# ସପନ ରାଇଜ
(ଶିଶୁ କବିତା ସଂକଳନ)

# SAPAN RAIJA
(Poems for Children)

**ଲେଖିକା :**
ଗୀତା ତ୍ରିପାଠୀ

**Author :**
Gita Tripathy

**ପ୍ରଥମ ପ୍ରକାଶ :**
ବୁଦ୍ଧ ପୂର୍ଣ୍ଣିମା - ୨୦୧୪

**First Edition :**
Buddha Purnima-2014

**ପ୍ରକାଶିକା :**
ଶ୍ୱେତା ମହାପାତ୍ର
ସି - ୨୪, କୋଏଲ ନଗର
ରାଉରକେଲା-୧୪
ଫୋନ୍ - ୯୪୩୯୬୬୪୯୦୦

**Published by :**
Shweta Mohapatra
C-24, Koel Nagar
Rourkela - 14
Mob.- 9439664900

**ଅକ୍ଷରସଜ୍ଜା ଓ ମୁଦ୍ରଣ :**
ଦାସ ପ୍ରିଣ୍ଟର୍ସ
ଉଦିତ୍‌ନଗର, ରାଉରକେଲା-୧୨
ଫୋନ୍ - ୯୪୩୭୧୦୯୮୯୯

**Page Layout & Printed at**
**Das Printers**
Uditnagar, Rourkela - 12
Ph.- 9437109899

**ମୂଲ୍ୟ :** ଚାଳିଶ ଟଙ୍କା ମାତ୍ର

**Price :** ₹ 40/-

# ସୂଚୀପତ୍ର

# ସପନ ରାଇଜ

ସପନେ ଦେଖିଲି ଦେଶ
ବାଘ, ଭାଲୁ ସଂଗେ ଖେଳୁଥିଲେ ସେଠି
ଯେତିକି ବାଳୁତ ମେଷ ।

ଲାଗିଲା ବଡ଼ିଆ ମଜା
ମକୁଟ ପିନ୍ଧିକି ସିଂହାସନେ ବସି
ଠେକୁଆ ହୋଇଛି ରଜା ।

ପଂଚଣ ଧରିକି ହାତୀ
ବିଲୁଆ ମାନଙ୍କୁ ପଢ଼ାଉଛି ପାଠ
ଫୁଲାଇ ଦେଇକି ଛାତି ।

ଘୁଷୁରି ଗାଧେଇ ସାରି
ଧୋବଲୁଗା ପିନ୍ଧି ଆସନେ ବସିଛି
ଦେହରେ ଅତର ମାରି ।





ବିଲେଇ ଆଇଁଷ ଛାଡ଼ି
ଠକ ଠକ କରି ମନ୍ଦିର ଯାଉଛି
ପାଦରେ କଠଉ ମାଡ଼ି ।

ସାବୁନ ଦେହରେ ଘସି
କାଳିଆ ଦେହକୁ ଗୋରା ମୁଁ କରିବି
କହୁଛି ମଇଁଷି ହସି ।

ନିଦ ମୋ ଭାଙ୍ଗିଲେ ଜେଜେ
କି ସପନ ଦେଖି ହସୁଚୁ ରେ ନାତି
କହିଲେ ବସି ମୋ ଶେଯେ ।

# ସପନ

ସପନ ଦେଖିଲି ବଗୁଲୀ ସାଙ୍ଗରେ
ଗପ କରୁଛନ୍ତି ମାଛ
ବଇଁଶୀ ଫୁଙ୍କିକି ବିଲେଇ ନାନୀଟି
କହୁଛି ମୂଷାଙ୍କୁ ନାଚ ।

ବାଘର ପିଠିରେ କଅଁଳା ଛେଳିଟି
ଖୁସିରେ ହୋଇଛି ଲାଉ
କାଉ ଓ କୋଇଲି କହୁଛନ୍ତି ମିଶି
କରିବେନି କଳି ଆଉ ।

ହସିକି ନେଉଳ କହୁଛି ସଭିଙ୍କୁ
ଆଜିଠୁ ନାଗ ମୋ ସାଥି
କୁକୁର ସାଙ୍ଗରେ ଗଛରୁ ଓହ୍ଲାଇ
ଖେଳ ଖେଳୁଅଛି ପାତି ।





ଠେକୁଆ ମାନଙ୍କୁ କହୁଛି ସିଂହଟି
ଆସ ମୋ ସାଥିରେ ଖେଳ
କାକୁବ ହୋଇକି ଦେଖୁଥିଲି ମୁହିଁ
ବଣେ ପଶୁଙ୍କର ମେଳ ।

ନିଦ ମୋ ଭାଙ୍ଗିଲା ଭାବିଲି ସତରେ
ସରଗ ହୋଇବ ଧରା
ଅହିଂସା ପାଇଁକି ସଂସାରଟି ହେବ
ସୁଖ ସମ୍ପଦରେ ଭରା ।

# ଅଜବ ଅଜା



ଅଜବ ଅଜା
ଥଣ୍ଡା ଧରିଦେଲେ ଆଇକୁ ମାଗନ୍ତି
ଚୁଡ଼ାର ଭଜା

କୁହନ୍ତି ପରା
ନାକ ର ପାଣିକୁ ଶୋଷିଦେବ ଚୁଡ଼ା
ସତେ କି ଖରା ।

ଜର ଟି ହେଲେ
ଆଇକୁ ବରାଦ କରିକି ପିଅନ୍ତି
କାଞ୍ଜିରୁ ବେଲେ ।

ସକାଳୁ ଉଠି
ଜଡ଼ା ତେଲ ଦେଇ ମୁଣ୍ଡଟି କୁଣ୍ଡାଇ
ବାନ୍ଧନ୍ତି ଚୁଟି ।



ହୋଇକି ବେଶ
କୁହନ୍ତି ଜଡ଼ାରେ ଧଳା ପଡୁନାହିଁ
ମୋହରି କେଶ ।

ବିନ୍ଧିଲେ ତାଳୁ
ତାଙ୍କ କଥା ମାନି ପାଣି ଆମେ ତାଙ୍କ
ମଥାରେ ଢ଼ାଳୁ ।



ମଜା ର କଥା
ସେଥିରେ ଅଜାଙ୍କ ଭଲ ହୋଇଯାଏ
ମଥା ର ବଥା ।

ଆସିଲେ ଶୀତ
ଅଦା ଚ଼' ପିଇ କୁହନ୍ତି ଅଦାଟି
ଦେହକୁ ହିତ ।

କୁହନ୍ତି ପିଲେ
କସରତ କରି ଜାଡ଼ କୁ ଜିତିବ
ନ ଡ଼ରି ତିଳେ ।

କାଟିଲେ ବେକ
ଚୂଲି ପାଖେ ବସି ବେକରେ ଦିଅନ୍ତି
ଗରମ ସେକ ।

ଆମରି ଅଜା
ନବେ ବରଷରେ ଖାଆନ୍ତି ଟାଣୁଆ
ମଟର ଭଜା ।

# ବେଗବାନ କିଏ



ଗାଁଟି ଯାକର କିଶୋର ପିଲାଙ୍କୁ
ବସାଇଲେ ଅଜା ପାଖରେ
କଥା ଶୁଣିବାକୁ ଆଈ ଆସିଗଲେ
ନାତିକୁ ଧରିକି କାଖରେ ।
ପଚାରିଲେ ଅଜା ସବୁଠାରୁ ଅଟେ
ବେଗବାନ କିଏ କୁହ ତ
ନିମିଷକ ମଧ୍ୟେ ଛୁଟିଯାଏ ସିଏ
କେହି ନୁହେଁ ତାର ସରି ତ ।
ବହୁତ ଭାବିକି ମୁନା କହିଥିଲା
କାର ଚାଲେ ଭାରି ବେଗରେ
ଅଲଗା ଯାନକୁ ପଛରେ ପକାଇ
ଛୁଟିଯାଏ ସିଏ ଆଗରେ ।



ଟୁନା କହିଥିଲା ମଟର ଗାଡ଼ିଠୁ
ବେଗବାନ ଅଟେ ରେଳଟି
ସେଇଥି ପାଇଁକି ରେଳଯାତ୍ରା କଲେ
ପଡ଼େ ନାହିଁ ଜଣା ବେଳଟି ।



ଉଡ଼ାଜାହାଜଟି ବେଗରେ ଉଡ଼ଇ
ଜୋର୍ ରେ କହିଲା କହ୍ନାଇ
ଅଢ଼େଇ ଘଣ୍ଟାରେ ପହଞ୍ଚାଇ ଦିଏ
କଲିକତା ଠାରୁ ଚେନ୍ନାଇ ।



କୁନା କହିଥିଲା ରକେଟ୍ ଆଗରେ
କେହି ନୁହେଁ ତାର ସରିକି
ଜହ୍ନମାମୁଁ ଦେଶେ ନେଇଯାଇଥିଲା
ତିନି ବିଜ୍ଞାନୀଙ୍କୁ ଧରିକି ।
ମଥା ହଲାଇକି କହିଥିଲେ ଅଜା
ଭୁଲ ଅଟେ ସବୁ ଉତ୍ତର
ସରମ ଲାଗୁଛି ଜାଣିକରି ମତେ
ତୁମେ ନୁହେଁ ଭଲ ଛାତର ।
ପଛରେ ଥାଇକି ଆଈ କହିଥିଲେ
ବେଗବାନ ଅଟେ ମନଟି
ଏଇ କଥା ମୁହିଁ ମହାଭାରତ ରେ
ପଢ଼ିଥିଲି ଗଲା ସନ ଟି ।
ଅବାକ ହୋଇକି କହିଥିଲେ ଅଜା
ଆଈ ଦେଲା ଠିକ୍ ଉତ୍ତର
ମନ ବେଗବାନ କହିଥିଲେ ପରା
ପଣ୍ଡୁଙ୍କର ବଡ଼ ପୁତର ।



# ଜନମ ଭୂଇଁ

ଯିବିନି ଜାପାନ, ଲଣ୍ଡନ, ସିଡ୍‌ନୀ
ଅବା ମୁହିଁ ଆମେରିକା
ଭାରତମାତାର ମୁହିଁଟି ଆଗରେ
ସବୁ ଦେଶ ଲାଗେ ଫିକା



ଭାରତ ଭୂଇଁର ପାଣି, ପବନରେ
ଗଢ଼ା ଏ ଶରୀର ମୋର
ପାଶେ ତା ରହିକି ସେବା ମୁଁ କରିବି
ସଂଜ, ସକାଳ ଓ ଭୋର

ଅହିଂସାକୁ ମୁହିଁ ଆଦରେଇ ନେଇ
ହୋଇବି ମହାତ୍ମା ଗାନ୍ଧୀ
ସବୁ ଧରମର ଭାଇ ଭଉଣୀଙ୍କୁ
ସେନେହେ ଦେବି ମୁଁ ବାନ୍ଧି





ଛୋଟ ପିଲା ବୋଲି ହେୟ କର ନାହିଁ
ହୋଇବି ରାଉତ ବାଜି
ଭାରତମାତାର ସନମାନ ପାଇଁ
ଜୀବନ ଦେବାକୁ ରାଜି

ବାକିଥିବା କାମ ସାରିଦେବି ମୁହିଁ
ହୋଇକି ଧରମପଦ
ନହେଉ ପଛକେ ପରତେ ତୁମର
କଥାଟି ମୋ'ର ସତ ।

# ଚତୁର ବାଳକ





ବଡ଼ ସହରରେ ରହୁଥିଲେ ଜଣେ
ଚ୍ଛଲାଖି ବିମାନ ଚାଳକ
ଘରକାମ ସବୁ କରିବା ପାଇଁକି
ଆଣିଲେ ଗାଁରୁ ବାଳକ

ମାଲିକ ଦିନଟେ ବଜାରୁ ଆଣିଲେ
ରସଗୋଲା ଆଉ ଜିଲାପି
ରସଗୋଲା ରଂଗ ଧୋବ ଫରଫର
ଜିଲାପିର ରଂଗ ଗୋଲାପି

ବାଳକକୁ ଡ଼ାକି ଜିଲାପି ଦେଖାଇ
କହିଲେ ଆଣିଛି ସାପକୁ
ଦୂରେ ଥିବୁ ତାର ଦଂଶିଦେବ ସିଏ
ଯିବୁନି ଜମା ତା ପାଖକୁ

ରସଗୋଲା ଆଡ଼େ ଆଙ୍ଗୁଳି ଦେଖାଇ
କହିଲେ ଅଣ୍ଡା ଏ ତାହାର
ଲାଗିବୁନି ଜମା ସାପ ରାଗିଯାଇ
ବସାଇବ ଲାଞ୍ଜେ ପାହାର

ଡ଼ରାଇ ଦେଇକି ମାଲିକ ଚ୍ଛଲିଲେ
ମନେ ମନେ ହସି କାମକୁ
ଭାବିଲେ ପିଲାଟି ଭୟେ ଥରୁଥିବ
ଶୁଣି କରି ସାପ ନାମକୁ

ରସଗୋଲା ଆଉ ଜିଲାପି ଖାଇକି
ପିଲାଟି ଖୁସିରେ ବସିଲା
ଆସିଗଲେ ବାବୁ କି ଉତ୍ତର ଦେବ
ଭାବିଦେଇ କେତେ ହସିଲା





ମାଲିକ ଫେରିକି ଦେଖିଲେ ଜିଲାପି
ରସଗୋଲା ନାହିଁ ଡ଼ବାରେ
ପିଲାକୁ ପଚ୍ଚରି ବସିଲେ ମାଲିକ
ହୋଇଯାଇ ପୁରା ଖପ୍ପାରେ

ଚତୁର ପିଲାଟି କହିଲା ବାବୁହେ
ସାପଚ୍ଛଲିଗଲା ଗାତକୁ
ପାଟିରେ ଧରିକି ଡ଼ିମ୍ବ ସାଥେ ନେଲା
ଯାଇଥିଲି ଯେବେ ଛାତକୁ ।

# ମଶା



ଜୀବ ମୁଁ ଛୋଟ ବିଷ ବହୁତ
ନାଁ ଟି ମୋର ମଶା
କାମୁଡ଼ି ଦେଲେ ଜାଣିବ ତୁମେ
ପଡ଼ିଲା ଶନି ଦଶା

ଆନୋଫେଲିସ, କ୍ୟୁଲେକ୍ସ ଆଉ
ଏଡ଼ିସ୍ ଆମ ନାଁ
ବୁଡ଼ିଲେ ରବି ମଣିଷ ଗନ୍ଧ
ଖୋଜିକି ଉଡୁ ଛାଁ

ମେଲେରିଆରୁ ଫାଇଲେରିଆ,
ଡ଼େଙ୍ଗୁ ବେମାର ଆଣି
ମାନବ ଦେହେ ରୋଗକୁ ଦେଇ
ପିଉ ରକତ ଟାଣି

ମଣିଷ ଦେହ ଫୁଟାଇ ଯେବେ
ଲହୁକୁ ପିଉ ଶୁଣ୍ଢେ
ପଶେଇ ଦେଉ ଜୀବାଣୁ, ଯିଏ
ଥାଏ ଆମରି ତୁଣ୍ଡେ





ଜମିକି ପାଣି ଯେଉଁଠି ଥାଏ
ସେଇଠି ଦେଉ ଅଣ୍ଡା
ଅଣ୍ଡାରୁ ଲାର୍ଭା, ଲାର୍ଭାରୁ ମଶା
ହୁଅନ୍ତି ଗଣ୍ଡା ଗଣ୍ଡା ।

ମଶାରି ଟାଙ୍ଗି ଶୋଇଲେ ଲୋକେ
ଭୋକ, ଉପାସେ ରହୁ
କରୁଣ କଣ୍ଠେ ଗୁଣୁ ଗୁଣୁ କି
ଦୁଃଖଟି ଆମ କହୁ

ଆମ ବଂଶର ନିପାତ ପାଇଁ
ଉପାୟ ରଖ ଜାଣି
ଘର, ବାହାରେ ଜମିବା ପାଇଁ
ଦେବନି ଜମା ପାଣି

ସଂଜ ହେଉଣୁ ରଖିବ ନାହିଁ
ଟାଟି, କବାଟ ଖୋଲି
ଝିଡ଼ିକି ପଟେ ଘରକୁ ପଶୁ
ଲଗା ସେଇଠି ଜାଲି

କଇଁଛ ଛାପ ଧୂପକାଠିର
ଧୂଆଁ କୁ ଆମେ ଡ଼ରୁ
ବିଷାକ୍ତ ଧୂଆଁ ବାଜିଲା କ୍ଷଣେ
ଠ'କ୍ କିନା ମରୁ ।

# କୁନି ଭଉଣୀ

କୁନି ଭଉଣୀ ମୋ ରାହା ଧରେ ଯେବେ
ଦେଖାଏ ତାକୁ ମୁଁ ଚନ୍ଦ
ଲୁହ ପୋଛିଦେଇ ଖୁସିରେ ଅନାଏ
ବନ୍ଦ କରି ତାର କାନ୍ଦ
ବାଇମୁଣ୍ଡି ଯେବେ କରିଥାଏ ମୁହିଁ
ହସେ ସିଏ କିରି କିରି
ରୁଷିବା କଥାଟି ଭୁଲିଯାଇ ପରା
ଖାଇଦିଏ ମିଠା ଖିରି
ରାଗିଲେ ସିଏ ମୁଁ ହସାଇବା ପାଇଁ
କୁତୁ କୁତୁ ତାକୁ କରେ
ହସି ହସି ସିଏ ତଳେ ଗଡ଼ିଗଲେ
ଉଠାଇ ତାକୁ ମୁଁ ଧରେ





ଚଟ୍ଟଶାଳୀରୁ ମୁହିଁ ଫେରିଲେ ଘରକୁ
ମତେ ଦେଖି ସିଏ ହସେ
ଘୋଡ଼ା କରି ମତେ ମୋ ପିଠିରେ ସିଏ
ପାଞ୍ଚଣ ଧରିକି ବସେ
କ୍ଷୀରଭାତ, ରୁଟି ନ ଖାଇ କି ଜମା
ମାଗିଥାଏ ସିଏ ମ୍ୟାଗି
ମ୍ୟାଗି ମନାକଲେ ଗରଜି କାନ୍ଦିକି
ଯାଇଥାଏ ସିଏ ରାଗି
କାର୍ଟୁନ ସିନେମା ଦେଖିବା ପାଇଁକି
ଅଝଟ ହୁଏ ସେ ଭାରି
ତାହାରି ଆଗରେ ଘରର ସଭିଏଁ
ଯାଉଛୁ ସତରେ ହାରି ।

# ପିଠା

ନାଁ' ଅଟେ ମୋର କାକରା
ପୁନିଅ ପରବ ଦିନରେ ସଭିଏଁ
ଦେଇଥାନ୍ତି ମତେ ଡ଼ାକରା ।

ବରା ମୁହିଁ ମସୁମୁସିଆ
ଚ଼ଟଣି ସାଂଗରେ ଲଗାଇ ଖାଇଲେ
ହେବ ତୁମେ ଖୁସି ବାସିଆ ।

ମଣ୍ଡା ମୁଁ ତୁମକୁ କହୁଛି
ପାଟିକୁ ତୁମର ଭଲ ଲାଗିବାକୁ
ପେଟରେ ପୁର ମୁଁ ଭରିଛି ।

ଦୋସା ମୁହିଁ ଭାରି ପତଳା
ସମ୍ବର ସାଥିରେ ସୁଆଦିଆ ଲାଗେ
ଥାଏ ଯେବେ ମୁହିଁ ତତଲା ।



ପୋଡ଼ପିଠା ମୋର ନାମଟି
ଖିରରେ ବୁଡ଼ାଇ ଖାଇଦେବ ଯଦି
ପୁରିଯିବ ତୁମ ପେଟଟି ।

ଏଣ୍ଡୁରି ମୁଁ ଭାରି ବଢ଼ିଆ
ସିଝା ପିଠା ବୋଲି ସଭିଏଁ ଖାଆନ୍ତି
ପେଟରେ ମୋ ପୁର ନଡ଼ିଆ ।

ଚକୁଳି ମୁଁ କେତେ ନରମ
ତାୱାରୁ କାଢ଼ିକି ତୁରନ୍ତ ଖାଇବ
ଥାଉ ଥାଉ ମୁହିଁ ଗରମ ।

ମାଲପୁଆ ମୁହିଁ ସରସ
ମୋହରି ଆଗରେ ବାକି ପିଠାମାନେ
ଦିଶନ୍ତି ସତରେ ନିରସ ।



# ମାମୁଁ ଯିବେ ବାଘମାରି

ସକାଳୁ ଉଠିକି  କହିଥିଲେ ମାମୁଁ
ଯିବେ ଆଜି ବାଘ ମାରି
ମାମୁଁଙ୍କ ମୁହଁରୁ ଶୁଣିକି ଏ କଥା
ଡ଼ରିଗଲି ମୁହିଁ ଭାରି ।

ପଚ୍ଚାରିଲି ତୁମେ ବାଘ ମାରି ଯିବ
ରାଜି ହେବେ କ'ଣ ଆଈ ?
ମାମୁଁ କହିଥିଲେ ଆଈର ଆଦେଶ
ବାଘମାରି ଯିବା ପାଇଁ ।

କହିଥିଲେ ମାମୁଁ ଯିବୁ ମୋ ସାଥିରେ
ବେଗେ ଦେ' କାମ ସାରି
ଦୁଇ ଚ଼କିଆରେ ଦୁହେଁ ମିଶି ଯିବା
ଯେମିତି ବାଜିବ ଘ୍ୱରି ।





ଥରି ଥରି ମୁଁ କହିଲି ମାମୁଁ ହେ
ଯିବିନାହିଁ ବାଘ ପାଶେ
ବଣର ରଜା ସେ ମହା ବଳବାନ
ମଣିଷ ମାନଙ୍କୁ ନାଶେ ।

ଠୋ ଠୋ ହସି କହିଥିଲେ ମାମୁଁ
ଯାଉଛି ମୁଁ ଗୋଟେ ଗାଁ
ଖୋରଧା ପାଖରେ ସେଇ ଗାଁ ଅଛି
ବାଘମାରି ତାର ନାଁ ।

# ମିକିର ଗାଡ଼ିଚଲା



ଟିକି ମୂଷା ମିକି ଅଳିକଲା ଦିନେ
କିଣିଦିଅ ବାପା ସ୍କୁଟି
କୁକୁର, ବିଲେଇ ଗୋଡ଼ାଇଲେ ମତେ
ବେଗରେ ଯିବି ମୁଁ ଛୁଟି ।

ବଜାରରୁ ବାପା ସ୍କୁଟି କିଣିଦେଲେ
ରଙ୍ଗ ଥିଲା ତାର ନାଲି
କହିଥିଲା ମିକି ପାଠଶାଳା ଆଉ
ଯିବିନି ମୁଁ ଚାଲି ଚାଲି ।

ସେଇଲାଗେ ମିକି ଛୁଟାଇଲା ସ୍କୁଟି
ଗଛେ ଲାଗି ଗଲା ପଡ଼ି
ଖଣ୍ଡିଆ, ଖାବରା ହୋଇଯାଇ ମିକି
ପକାଇଲା ସେଠି ରଡ଼ି ।

ଖବର ପାଇକି ବାପା ଧାଇଁ ଆସି
ସେନେହରେ ତାକୁ ଧରି
କହିଲେ ମିକିରେ ବିପଦ କଟିଲା
ଜୀବନ ରଖିଲେ ହରି ।

ସାଥେ ସାଥେ ତାକୁ ଘରକୁ ଆଣିକି
ଦେହରେ ମଲମ ବୋଳି
ଗାଡ଼ି ଚଲାଇବା ନିୟମ କହିଲେ
ମୁହଁ ତା ହାତରେ ତୋଳି ।





ଚାଳିଶ ବେଗରେ ଚଲାଇବୁ ଯଦି
ସଡ଼କରେ ତୁହି ଗାଡ଼ି
ବୋଲରେ ତୋହର ଗାଡ଼ିଟି ରହିବ
ଯିବନି କୁଆଡ଼େ ମାଡ଼ି ।

ଟ୍ରାଫିକ ଲାଇଟ ଜଳୁଥିଲେ ନାଲି
ରୋକିଦେବୁ ଗାଡ଼ି ତୁହି
ସବୁଜ ଜଳିଲେ ଆଗକୁ ବଢ଼ିବୁ
ଶିଖାଉଛି ତତେ ମୁହିଁ ।

ମୋଡ଼ିବା ଆଗରୁ ଇଣ୍ଡିକେଟର ଦେଇ
ଆଗପଛ ଦେବୁ ଚାହିଁ
ନିରାପଦେ ତେବେ ଗାଡ଼ିଟି ଚାଲିବ
ଧକ୍କା ଜମା ହେବ ନାହିଁ ।

ବାପାଙ୍କ ପାଖରୁ ଶୁଣିସାରି ସବୁ
ମୁଣ୍ଡ ଟୁଙ୍ଗାରିକି ମିକି
କହିଲା ବାପାହେ ଗାଡ଼ି ଚଲାଇବା
ନିୟମ ଗଲି ମୁଁ ଶିଖି ।

# ଗଛ



ଦେଖିବାକୁ ସିଏ ନିହାତି ଛୋଟିଆ ନାମ ତା ମଂଜି
ଆଗାମୀ ଗଛକୁ ଯତନେ ରଖିଛି ପେଟରେ ଖଞ୍ଜି ।

ପାଇଲେ ପବନ, ଉତ୍ତାପ ଓ ପାଣି ଆଖି ସେ ମେଲେ
ସୂରୁଜ ଆଲୋକ ଦେଖିବା ପାଇଁକି ମାଟିକୁ ଠେଲେ ।

ଛୋଟିଆ ଗଛରାକୁ ଖାଇବା ଯୋଗାଏ ପତର ବୀଜ
ବଡ଼ହେଲେ ଗଛ ବନାଏ ନିଜର ଖାଇବା ଚିଜ ।





ଧରଣୀ ବୁକୁରୁ ଚେର ବାଟ ଦେଇ ଆଣେ ସେ ପାଣି
ପାଣି ସାଥେ ସାଥେ ଆଣିଦିଏ ଖାଦ୍ୟସାର କୁ ଟାଣି ।

ବାୟୁମଣ୍ଡଳରୁ ଅଙ୍ଗାରକାମ୍ଳ ବାଷ୍ପ ନେଇ
ଖାଇବା ବନାଏ ପାଣିକୁ ସେଥିରେ ମିଶାଇ ଦେଇ ।

ସେଇଥିପାଇଁ କି ଦରକାର ହୁଏ ଦିନର ଖରା
ପତର ଅଟଇ ଗଛର ରୋଷେଇ ଘରଟି ପରା ।

ରୋଷେଇ ସାରିକି ଦେଇଥାଏ ସିଏ ଅମଳଜାନ
ତାହାକୁ ପ୍ରାଣୀଏ ନିଶ୍ୱାସ ନେଇକି ବଞ୍ଚନ୍ତି ଜାଣ ।

# ମୁଁ କିଏ ?

ଢ଼ଉଲ ଢ଼ାଉଲ ଚେହେରା ମୋହର
ପିଲାଦିନେ ରଙ୍ଗ ଶାଗୁଆ
କଞ୍ଚା ଲଙ୍କା ସାଙ୍ଗେ ମିତ ମୁଁ ବସିଛି
ହେଉ ପଛେ ସିଏ ରାଗୁଆ ।

ଜରୁଆ ପାଟିକୁ ଭାରି ଭଲ ଲାଗେ
ଲୁଣ ସାଙ୍ଗେ ମତେ ଘଷିଲେ
ଥପ ଥପ ହୋଇ ରସ ଝରିଯାଏ
ପନିଖିରେ ମତେ କାଟିଲେ ।

ପାକଳ ହୋଇକି କରିଥାଏ ମୁହିଁ
ହଳଦିଆ ରଙ୍ଗ ଧାରଣ
ସନ୍ତୋଷୀ ପୂଜାରେ ଛୁଇଁବାକୁ ମତେ
ସଭିଏଁ କରନ୍ତି ବାରଣ ।











ଖରାଦିନ ଯେବେ ଆସିଯାଏ ସେବେ
ବଢ଼ିଯାଏ ମୋର ଚାହିଦା
ସରବତ କରି ରସ ମୋ ପିଇଲେ
ଦେହ ପାଇଁ ହୁଏ ଫାଇଦା ।

ବରଷଟି ସାରା ଖାଇବା ପାଇଁକି
କରିକି ମନରେ ବିଚାର
ଜେଜେ ମା ମତେ ଖରାରେ ଶୁଖାଇ
କରନ୍ତି ସୁଆଦ ଆଚାର ।

ଜାଣିଲକି ପିଲେ ଲେମ୍ବୁ ମୋର ନାଁ
ଅଟେ ସିନା ମୁହିଁ ଆମ୍ବିଳା
ଖାଦ୍ୟସାର 'ଗ' ରସେ ମୋ ଭରିଛି
କରବି ତୁମକୁ ଦମ୍ଭିଲା ।

# ଭାରତ ମାତା

ଭାରତ ମାତାର ସନ୍ତାନ ମୁହିଁ
ଜୁହାର କରେ ତା ମାଟିକୁ ଛୁଇଁ ।

ହିମାଳୟ ସାଜେ ମକୁଟ ହୋଇ
ସାଗର ଦିଏ ତା ଚରଣ ଧୋଇ ।

ତାରା ଝିଲମିଲ ଆକାଶ ତାର
ଝରଣା, ନଈ ତା ଗଳାର ହାର ।

ଏ ଦେଶର ମା ସହନଶୀଳା
ଜୀବନ ତାହାର ଅପଣା ପିଲା ।





ଗଛ, ପାହାଡ଼କୁ ପୂଜନ୍ତି ଏଠି
ଖଟାନ୍ତିନି କିଏ କାହାକୁ ବେଠି ।

ଜାତି, ଜାତି ଲୋକ ରହନ୍ତି ମିଶି
ଉଜ୍ଜ୍ୱଳ ଦିନ ତା ମଧୁର ରାତି ।

ମୁନି ଋଷି ଏଠି କରନ୍ତି ଧ୍ୟାନ
ବଢ଼ାଇ ଥାଆନ୍ତି ଅସଲ ଜ୍ଞାନ ।

ମଣିଷ ରୂପରେ ଜନମିଛନ୍ତି
ଏହିଠାରେ ରାମ ଅଯୋଧ୍ୟାପତି ।

ତା କୋଳେ ଜନମି ଯାଇଛି ତରି
ନାଇବି ଧୂଳି ତା ତିଳକ କରି ।

# କେଶର ଆହାର

କହିଲେ ଅଜା ନାତିକୁ
ଆରେ ଢ଼ହରା
ଚୁଟିରେ କିଆଁ ନଦେଇ ତେଲେ
କରିଛୁ ତାକୁ କହରା ।

ଲାଗିଲେ ତେଲ ହୋଇବ
କେଶ କଅଁଳ
ମଥାରେ ଚୁଟି ଉଠିବ ପୁଣି
ହୋଇକି ପୁରା ଗହଳ ।

ଆହାର ଦେଖ ଦେହକୁ
କରେ ଶକତ
ଘସିଲେ ତେଲ ମଥାରେ ନିତି
କେଶକୁ ମିଳେ ବକତ ।



ନଦେଲେ ତେଲ ହୋଇବ
ମଥା ଟାଙ୍ଗରା
କେମିତି ତୁହି ଦିଶିବୁ କହ
ଅଟୁ ତୁ ପୁଣି ବାଙ୍ଗରା ।

କହିଲା ନାତି ଆଖିକୁ
ତାର ନଚାଇ
ଆଜିଠୁ ଅଜା କେଶକୁ ମୋର
ତେଲରେ ଦେବି ପଗାଇ ।

# ଜହ୍ନ ମାମୁଁ

ପୁନେଇ ରାତିରେ ତାରାଙ୍କ ମେଳରେ
ହସୁଥିଲା ଯେବେ ଶଶି
ମୋହରି ଡ଼ାକରେ ଉଚ୍ଚ ଆକାଶରୁ
ପଡ଼ିଲା ଛାତରେ ଖସି ।

ପାଖରେ ପାଇକି କହିଲି ଜହ୍ନକୁ
ନାମ ଅଟେ ମୋ ରାମୁ
କାହିଁକି କହିଲ ବାପ, ପୁଅ, ନାତି
ଡ଼ାକନ୍ତି ତୁମକୁ ମାମୁଁ ।









ଶରଧାରେ ହସି କହିଲେ ରାମୁରେ
ଭଉଣୀ ଅଟେ ମୋ ମହୀ
ରାତିରେ ଜୋଛନା ଦେବା ପାଇଁ ତାକୁ
ଆକାଶେ ଥାଏ ମୁଁ ରହି ।

ତୁମେ ମାନେ ସବୁ ତାହାରି ସନ୍ତାନ
ତେଣୁ ମୁଁ ତୁମର ମାମୁଁ
ସରଳ ଭାଷାରେ ବୁଝାଇ କହିଲି
ବୁଝିଲୁ କି ନାହିଁ ରାମୁ ?



# ମେଲେରିଆ



ସୋନୁକୁ ଦିନେ ହୋଇଲା ଜର
ଆସିଲା ଥରି ଥରି
କାମକୁ ଛାଡ଼ି ବସିଲେ ମା
କୋଳରେ ତାକୁ ଧରି ।

କହିଲା ସୋନୁ ଘୋଡ଼ାଇ ଦିଅ
ଲାଗୁଛି ଶୀତ ଭାରି
ଘୋଡ଼ାଇ ଦେଲେ ଆଣିକି ବାପା
ମୋଟା କମ୍ବଳ ଘ୍ବରି ।

ତଥାପି ଜର କମିଲା ନାହିଁ
ଆଈ ଆଣିଲେ ପାଣି
ପାଖରେ ବସି ପୋଛିଲେ ଦେହ
ଓଦା କରିକି କାନି ।



ଡ଼ରିକି ବାପା ସୋନୁକୁ ନେଲେ
ପାଖ ଡ଼ାକ୍ତରଖାନା
ରକ୍ତ ପରୀକ୍ଷା କଲାରୁ ଯାଇ
ପଡ଼ିଲା ରୋଗ ଜଣା ।

କ୍ଲୋରୋକୁଇନ ବଟିକା ନେଇ
କହିଲେ ଡ଼ାକତର
ଆନୋଫେଲିସ ମଶା କାମୁଡ଼ି
କରିଛି ଏହି ଜର ।



ଏଇ ଜରଟି ବିପଦମୟ
ନାଁ ଟି ମେଲେରିଆ
ରକ୍ତ କଣିକା ଫାଟିବା ହେତୁ
ଦେହଟି ରଡ଼ନିଆଁ ।

ଘର ପାଖରେ ରହିଛି ଯଦି
ଜମା ହୋଇକି ପାଣି
ସେଇଠି ମଶା ଦିଅନ୍ତି ଅଣ୍ଡା
ଆଜିଠୁ ରଖ ଜାଣି ।

ମଶା ନହେବା ପାଇଁ ରଖିବ
ସଫା ଅଗଣା ଘର
ତାହେଲେ ଯାଇ ମେଲେରିଆକୁ
ନଥିବ ଜମା ଡ଼ର ।

ମଶାରୀ ଟାଙ୍ଗି ଶୋଇବ ନିତି
କରିବ ନାହିଁ ହେଳା
ଝୁଣାର ଧୂଆଁ ବୁଲାଇ ଦେବ
ନିଇତି ସଞ୍ଜ ବେଳା ।

# କିଟୁ

କିଟୁ ଅଟେ ଘରେ ସବୁଠୁ ସାନ
ତୋଫା ମୁହଁ ତାର ଠେକୁଆ କାନ ।

ମା' ତାକୁ ଭଲ ପାଆନ୍ତି ଭାରି
ବୟସ ତାହାର ଜମାରୁ ଚାରି ।

ପାଟି ଲାଗେ ତାର ଟିକେ ସେ ଖନା
ଦାନ୍ତ ଘଷିବାକୁ କରେ ସେ ମନା ।



ଆସିଗଲେ ଦିନେ ଗାଁରୁ ଅଜା
କିଟୁକୁ ଲାଗିଲା ବଢ଼ିଆ ମଜା ।



ଅଜାଙ୍କର ଥିଲା ପାକୁଆ ପାଟି
ଖାଉଥିଲେ ସିଏ ପକଡ଼ି ବାଟି ।

ପଚାରିଲା କିଟୁ ହଇଏ ଅଜା
ବିନା ଦାନ୍ତେ ତୁମେ ପାଉଛ ସଜା ।

ଦାନ୍ତ ଲାଗି ଆମେ ଚୋବାଇ ଖାଉ
ତୁମେ କୁହ କିଆଁ ଖାଉଛ ଜାଉ ?



କିଟୁକୁ ସେନେହେ କୋଳରେ ଚାକି
କହିଥିଲେ ଅଜା ଭିଜାଇ ଆଖି ।

ପିଲାଦିନେ ସିଏ ଚଗଲା ଥିଲେ
ମା'ଙ୍କ କଥାକୁ ନ ମାନି ତିଲେ ।

ନ ଘଷିକି ସିଏ ସକାଳେ ଦାନ୍ତ
ଖାଉଥିଲେ ବାସି ପଖାଳ ଭାତ ।

ଅକାଳରେ ଦାନ୍ତ ପଡ଼ିଲା ଝଡ଼ି
ପାରିଲେନି ଖାଇ ଚଣା ଓ ବଡ଼ି ।

ପାକୁଆ ହେବାର କାରଣ ଜାଣି
ଝରିଲା କିଟୁର ଆଖିରୁ ପାଣି ।

କାନଧରି କିଟୁ କହିଲା ଅଜା
ଜାଣିଗଲି ଦାନ୍ତ ଘଷାର ମଜା ।

ଘଷିବି ଦାନ୍ତ ମୁଁ ଏଣିକି ପରା
ଆସିବା ଆଗରୁ ସକାଳ ଖରା ।

# ପୁଅ, ଝିଅ



ମୁନା, ମୁନି ଦୁହେଁ କାହାଁଲା ଭାଇ ଓ ଭଉଣୀ
ମୁନାର ଶରୀର ଟାଣୁଆ ଅଟଇ
ମୁନିର ଦେହଟି ଲହୁଣୀ ।

ବଡ଼ ହେଲା ଯେବେ ଖଡ଼ି ଛୁଆଁ ହେଲା ମୁନାର
ମୁନିର କାନଟି ଫୋଡ଼ାହେଲା ସେବେ,
ପିନ୍ଧିଲା ଫୁଲ ସେ ସୁନାର ।

ବହିଧରି ମୁନା ଚଟ୍ଟାଳୀ ହୋଇଲେ ପାଆର
ଘରଟି ଭିତରେ ମୁନି ରହି କରି
ବୋଲ ହାକ କରେ ମାଆର ।



ପାଠଶାଳା ଯାଇ ଶିଖୁଥିଲା ମୁନା ଉଡ଼ାଣ
ମାଆର ସାଥିରେ ପାଇଟି କରିକି
କାନ୍ଦୁଥିଲା ମୁନି ପରାଣ ।

ମାଆ କହୁଥିଲେ ଧନ ତୁ ଅଟଇ ପର ର
କାମ ଶିଖିଥିଲେ ବାହାହେଲା ପରେ
ଟେକ ତୁ ରଖିବୁ ଘରର ।




ଚଟ୍ଟାଳୀ ଯିବାକୁ କାନ୍ଦେ ନିତି ମୁନି ଧକେଇ
ଏତିକିବେଳକୁ ସହରରୁ ଆସି
ପହଞ୍ଚିଲେ ତାର କକେଇ ।

ଭାଇ, ଭାଉଜଙ୍କୁ ଦେଇଥିଲେ ସିଏ ସନ୍ଦେଶ
ଝିଅମାନେ ପରା ପାଠ ପଢ଼ିବାକୁ
ଯାଉଛନ୍ତି ଏବେ ବିଦେଶ ।

ପୁଅଟି ପଢ଼ିଲେ ଖାଲି ନିଜ ପାଇଁ ପଢ଼ିବ
ଝିଅ ପଢ଼ିଥିଲେ ନିଜ ହାତରେ ସେ
ଭାବି ବଂଶଧର ଗଢ଼ିବ ।

ବାପା ରାଜି ହେଲେ ମୁନି ଗଲା ମୁନା ସାଥିରେ
ଭାଇ ଓ ଭଉଣୀ ଚଟଶାଳୀ ଯାଇ
ପାଠେ ଯାଇଥିଲେ ମାତିରେ ।

# ସୁସ୍ଥ ରହିଲେ

କୁକୁର ରଙ୍ଗଟି କାଳିଆ
ଦୁରବଳ ବୋଲି ଦଉଡାଏ ତାକୁ
ବଳୁଆ କୁକୁର ବଳିଆ ।

ଦୁଃଖ ଦେଖି ତାର ଅରୁଣା
କାଳିଆ କୁକୁର ପାଇଁକି ମନରେ
ଆସିଲା ଅଶେଷ କରୁଣା ।

ମା'ଠୁ ଖାଇବା ମାଗିକି
ଶରଧାରେ ସିଏ ଖୋଇଥିଲା ନିତି
କାଳିଆ କୁ ଜଗି ବସିକି ।





ଅରୁଣା ଠୁ ଖାଇ ବକତ
କାଳିଆ ଦେହରେ ତାକତ ଆସିଲା
ହୋଇଗଲା ସିଏ ଶକତ ।



କହିଲା ଅରୁଣା ସ୍ନେହରେ
କାଳିଆ ଆଉ ତୁ ଡ଼ରିବୁନି ଜମା
ବଳ ଆସିଲାଣି ଦେହରେ ।

ଗୋଡ଼ାଇଲା ଦିନେ ବଳିଆ
ଲାଙ୍ଗୁଡ଼ ନ ଜାକି ଭୁକିଲା ଜୋରରେ
ସାହସ ର ସହ କାଳିଆ ।

ବଳିଆ ବାଟକୁ ଭାଙ୍ଗିକି
ଦଉଡ଼ି ଦଉଡ଼ି ଦୂରକୁ ଯାଇକି
ଖୋଳିଥିଲା ମାଟି ରାଗିକି ।

ଶୁଣ ପିଲେ ଯେତେ ଡ଼ରୁଆ
ସୁସ୍ଥ ରହିଲେ ଦୁଷ୍ଟ ମାନଙ୍କୁ
କରିବନି ତୁମେ ପରୁଆ ।

# ସୁନା ମୁନା

ଟିଭି ଦେଖିସାରି ଶୋଉ ଶୋଉ ମୁନା
ହୋଇଯାଏ କେତେ ରାତି
ସେଇଥି ପାଇଁକି ବାପାଙ୍କ ପାଖରୁ
ଗାଳି ଶୁଣେ ମଥା ପାତି ।

ଦଶଟାରେ ଉଠି ତରତର ହୁଏ
ପାଇଟି ସରେନି ମୋଟେ
ଅଗାଧୁଆ ସିଏ ପାଠଶାଳା ଯାଏ
ପରଟା ଖାଇକି ଗୋଟେ ।



ଜେଜେବାପା ଦିନେ ମୁନାକୁ ଡ଼ାକିକି
କହିଲେ ମୁରୁକି ହସି
ଗୁମର କଥାଟି କହୁଚି ତତେ ମୁଁ
ଶୁଉଣୁ ପାଖରେ ବସି ।

ସବୁଦିନେ ତୁହି ପଛେ ପଡ଼ିଅଛୁ
ସମୟ ଧାଉଁଛି ଆଗ
ସମୟ ଆଗେରେ ରହି ତୁ ପାରିବୁ
କରିଲେ ଗୋଟିଏ ବାଗ ।



ସଅଳ ଶୋଇଲେ ସଅଳ ଉଠିବୁ
ହେବ ତୋର ଜିତା ପଟ
ରାତି ଟିଭି ଦେଖା ଛାଡ଼ିଦେ ରେ ନାତି
ନ କରି ଆଉ ତୁ ହଟ ।

ଟିଭି ନ ଦେଖିକି ସଅଳ ଉଠିଲା
ଜେଜେଙ୍କ କଥାଟି ମାନି
ଜଲଦି ଉଠିବା ଦେଖି ଖୁସି ହେଲେ
ବାପା, ବୋଉ ଆଉ ନାନୀ ।

ସବୁକାମ ସାରି ସଠିକ ସମୟେ
ସ୍କୁଲ ଗଲା ଯେବେ ମୁନା
ଅବଧାନେ ତାର ପିଠି ଥାପୁଡ଼ାଇ
କହିଥିଲେ ମୁନା ସୁନା ।

# କଟକ ସହର

କଟକ ମୋ ପିୟ ସହର
ତାହାରି କୋଳରେ କାଟିଛି ମୁଁ କେତେ
ସକାଳ ଓ ଦୁଇପହର ।

ବାପାଙ୍କ ହାତକୁ ଧରିକି
ଆନିକଟ ଠାରେ ମହାନଦୀ ଦେଖି
ଥରି ମୁଁ ଡ଼ାକିଛି ହରିଙ୍କି ।

ବାଲିଯାତ ମୁହିଁ ଯାଇକି
ଦହିବରା ଆଉ ଠୁଙ୍କା ପୁରି ଖାଇ
ଘରକୁ ଆସିଛି ଧାଇଁକି ।

ମନେ ଅଛି ଶିଶୁ ଦିବସ
ଚ୍ଲିଚ୍ଲି ମୁହିଁ ବାରବାଟୀ ଯାଏ
ନ ହେଇ ଟିକେ ବି ଅବଶ ।







ଦଶହରା ବଡ଼ ପରବ
ଚ୍ନିମେଢ଼ ଦେଖି ଖୁସି ମୁଁ ହେଇଛି
ମନେ ମୋ ଆସିଛି ଗରବ ।

'ସମାଜ' ଅଫିସ ଭିତରେ
ଗୋପବନ୍ଧୁଙ୍କର ମୁରତି ଦେଖିକି
ଆନନ୍ଦ ଆସିଛି ଚିତ୍ତରେ ।

ରେଭେନ୍ସା କଲେଜ ଯାଇଛି
ବଗିଚ୍ଚ ମଝିରେ ସୂର୍ଯ୍ୟ ଘଡ଼ି ଦେଖି
ଆବାକାବା ହୋଇ ଯାଇଛି ।

ସମୟ ବଢ଼ିଛି ଘୁରିକି
ଦୂର ସହରରେ ଦିନ ମୁଁ କାଟୁଛି
କଟକ କୁ ଝୁରି ଝୁରି କି ।

# ଲାଞ୍ଜ ବିହୀନ ଜୀବ

ମୁନା ର ଉପାଧି        ଦେଖି କରି ଅଜା
        କହିଥିଲେ ଖଟେ ବସି
ମଗଜେ ତୋ'ର        କେତେ ବୁଦ୍ଧି ଅଛି
        ଦେବି ଆଜି ମୁହିଁ କସି ।

ପାନ କୁ ପାକୁଳି        ପଗ୍ଳରିଲେ ଅଜା
        ବୁଲାଇକି ଓଠେ ଜିଭ
କହିଲୁ ଦେଖିବା        ଲାଞ୍ଜ ନ ଥାଇକି
        କିଏ ସେହି ତିନି ଜୀବ ?

ମନ ଦରପଣେ        ଦେଖିଗଲା ମୁନା
        ପଶୁ ପକ୍ଷୀ ଯେତେ ଜାତି
ସଭିଙ୍କ ପଛରେ        ଲାଞ୍ଜ ଯେ ଲମ୍ବିଛି
        ଶୁଆ, ଶାରୀ, ସିଂହ, ହାତୀ ।







ରାଗିଯାଇ ମୁନା        କହିଲା ଅଜାଙ୍କୁ
        ବିନା ଲାଞ୍ଜେ ଜୀବ ନାହିଁ
ତୁଛାଟାରେ ଅଜା        ମୋ ସାଥିରେ ତୁମେ
        ଲାଗୁଅଛ କାହିଁପାଇଁ ?

କହିଥିଲେ ଅଜା        ମଣିଷ, କଙ୍କଡ଼ା,
        ବେଙ୍ଗ ପରା ତାଙ୍କ ନାଁ
ଉତ୍ତର ଶୁଣିକି        କାବା ହୋଇ ମୁନା
        କରିଦେଲା ପାଟି ଆଁ ।

# ବୋତଲାସୁର



ସାଗର କୂଳରୁ ପାଇଥିଲା ମୁନା ବୋତଲଟିଏ
ଭାବିଲା ସୁନ୍ଦର ବୋତଲଟି ଫିଙ୍ଗି ଦେଇଛି କିଏ ?

ଖୁସିରେ ଘରକୁ ଦଉଡ଼ିଲା ସିଏ ହାତରେ ଧରି
ବୋତଲ ଉପରେ ଲାଗିଥିଲା ଚକଚକିଆ ଜରି ।

ଛାତକୁ ଯାଇକି ଖୋଲିଦେଲା ମୁନା ଯେମିତି ଠିପି
ଅସୁର ବାହାରି ଧରିଥିଲା ମୁନା ବେକକୁ ଚିପି ।

କହିଲା ଅସୁର ଶୋଇଥିଲି ବନ୍ଦ ବୋତଲେ ମୁହିଁ
ଠିପି ଖୋଲିଦେଇ ଉଠାଇଲୁ ମତେ କାହିଁକି ତୁହି ?

ଆଉଟୁ ପାଉଟୁ ହେଉଅଛି ଭୋକ ଲାଗୁଛି ମତେ
ଚ଼ଉଲୁ କରିକି ନିମିଷରେ ଗୋଟା ଗିଳିବି ତତେ ।

ସାହସ କରିକି କହିଥିଲା ମୁନା ମିଛ ତୁ କହୁ
ବିଶାଳ ଦେହ ତୋ କେମିତିକା ତୁହି ବୋତଲେ ରହୁ ?



ନିଜକୁ ସ୍ୱଲାଖ ଆଉ ମତେ ତୁହି ଭାବୁଛୁ ବୋକା
ଜାଣିଗଲି ଛୋଟପିଲା ବୋଲି ମତେ ଦେଉଛୁ ଧୋକା ।

କହିଲା ଅସୁର ଯାଉନାହୁଁ ତୁହି ପରତେ ମତେ
ବୋତଲେ ପଶିକି ଦେଖାଇ ଦେବି ମୁଁ ଏଇଲେ ତତେ ।

ହୋଇଯାଇ ଧୂଆଁ ପଶିଲା ଅସୁର ବୋତଲେ ଯାଇ
ତୁରନ୍ତ ଠିପିକୁ ବନ୍ଦକଲା ମୁନା ମଉକା ପାଇ ।

ବୋତଲକୁ ନେଇ ଫିଙ୍ଗିଦେଲା ମୁନା ସମୁଦ୍ର ଜଳେ
ଜୀବନ ପାଇକି ଫେରିଥିଲା ମୁନା ଘରକୁ ବଳେ ।

ମନେରଖ ପିଲେ ମୁକୁଳିଲା ମୁନା ସାହସ ହେତୁ
ବିପଦ ବେଳରେ ମୁନା କଥା ସଦା କରିବ ହେତୁ ।

# ଚନ୍ଦ୍ରବିନ୍ଦୁ

ମୋବାଇଲ ଫୋନ କାରସାଦି ଦେଖି
ଅଜା କହିଥିଲେ ଏଁ
ଦଶହରା ବେଳେ ପେଁକାଳି ବାଲା
କରୁଥିଲା ପେଁ, ପେଁ

ଜେଉଁ ମାସେ କୁହ ଗରମ ଅଧିକ
ଛେଳି କହିଥିଲା ମେଁ
ଗରମ ତାୱାରେ ପିଠାଟି ପଡ଼ିକି
ହେଉଥିଲା ସେଁ, ସେଁ







ଘରୁ ବାହାରନ୍ତି ଆମ ଅଜା ଯେବେ
ଆଈ କରିଥାଏ କେଁ
ଜେଜେଙ୍କ ରଙ୍ଗିଲା ଚୁଟି କୁ ଦେଖିକି
ହସୁ ଆମେ ଫେଁ, ଫେଁ

ଛୋଟିଆ ନଳାଟି ଡ଼େଇଁପଡ଼ି ବାପା
ମତେ କହିଥିଲେ ଢ଼େଁ
ଅରଣା ମଇଁଷି ଦେଖିକରି ମିନି
କାନ୍ଦିଥିଲା ଭେଁ, ଭେଁ ।

# ଅଜାଙ୍କ ସଜା

ଅଜାଙ୍କ କାନରେ ନୋଳି
ବଜାରକୁ ଗଲେ ପାଉଡ଼ର ମେଞ୍ଚେ
ମୁହଁରେ ଦିଅନ୍ତି ବୋଳି ।

ଦଶହରା ଯେବେ ଆସେ
ଅତର ଲଗାଇ ବୁଲି ବାହାରନ୍ତି
ମହମହ ହୋଇ ବାସେ ।

ଆଈ ଦେଖି ତାଙ୍କ ରଙ୍ଗ
କହିଥିଲେ ମତେ ଭଲ ଲାଗୁନାହିଁ
ଏଣିକି ତୁମର ଢ଼ଙ୍ଗ ।

ଧଳା ପଡ଼ିଲାଣି କେଶ
ବୟସ ହେଲାଣି ଏବେଠାରୁ ଆଉ
ହୁଅନାହିଁ ଏତେ ବେଶ ।





ଆଈଙ୍କୁ ନ ଶୁଣି ଅଜା
ଚୁଟିକୁ ରଙ୍ଗାଇ କହିଲେ ହସିକି
ଗାଁ ର ଅଟେ ମୁଁ ରଜା ।

ରଙ୍ଗ ପାଇଁ ତାଙ୍କ ମୁଣ୍ଡ
ଗଲୁକଲା ଯେବେ ଗାଁ ଲୋକସବୁ
ହୋଇଗଲେ ଘରେ ରୁଣ୍ଡ ।

ବଇଦ ପାଖକୁ ଯାଇ
ମଲମ ବୋଳିଲେ ଅଜାଙ୍କ ମଥାରେ
ଗାରୁ ଗାରୁ ହୋଇ ଆଈ ।

ଶେଷରେ କହିଲେ ଅଜା
ଆଈ କଥା ମୁହିଁ ମାନିକି ଚଳିବି
ନହେଲେ ମିଳିବ ସଜା ।

# ପାଠ ପଢ଼ାର ବାଗ



କୁନା ବୋଲି ଅଛି ଗୋଟେ ପିଲା
ପାଠ ପଢ଼ାରେ ସେ ଭାରି ଢ଼ିଲା ।

ଚହାଳୀ ଯିବାକୁ କରେ ମନା
ପରୀକ୍ଷା ଆସିଲେ ହୁଏ ବଣା ।

ଗାଁରୁ ଆସିଲେ ଅଜା, ଆଈ
ବୁଝାଇଲେ ତାକୁ ଏକା ପାଇ ।

ପାଠକୁ ଭାବୁଛୁ ତୁହି ଅରି
ପରୀକ୍ଷାକୁ ତେଣୁ ଯାଉ ଡ଼ରି

ବରଷ ଆରମ୍ଭୁ ପଢ଼ ପାଠ
ତାହେଲେ ହୋଇବୁ ଭଲ ଚଟ ।

ନ ଥିବ ପରୀକ୍ଷା ପାଇଁ ଭୟ
ପାଠକୁ କରିବୁ ତୁହି ଜୟ

ସେହିଦିନ ଠାରୁ ହେଲା କୁନା
ବାଇଶ କ୍ୟାରଟ ଖାଣ୍ଟି ସୁନା ।

ପ୍ରଥମ ଦିନରୁ ପାଠ ପଢ଼ି
ପରୀକ୍ଷା ଭୟକୁ ଦେଲା ତଡ଼ି ।

# ଆମ ଶୁଆ





ଆମ ଘରେ ଅଛି ଗୋଟିଏ ଶୁଆ
ରାଗିଯାଏ ସିଏ ଦେଖିଲେ କୁଆ ।

ନାଲି ଥଣ୍ଟ ତାର ଗୋଲିଆ ଆଖି
ଖାଏ ନିତି କଞ୍ଚା ଲଙ୍କାକୁ ଚାଖି ।

ବାପା ତାକୁ ଭଲ ପାଆନ୍ତି ଭାରି
ବୁଲାନ୍ତି ଶୁଆକୁ ଅଗଣା ବାରି ।



ଦେଖିଲେ ମତେ ସେ ହୁଅଇ ଖୁସି
ଡ଼ରିଯାଏ ଯେବେ ଦେଖଇ ପୁଷି ।

ହରେ କୃଷ୍ଣ ନାମ ସକାଳୁ ନିଏ
ଅଚିହ୍ନା ଲୋକକୁ ପଚାରେ 'କିଏ' ।

ଆମ ଶୁଆ ଅଟେ ବୁଦ୍ଧିଆ ଭାରି
ଗଣିପାରେ ସିଏ ଏକରୁ ଚାରି ।



# ଖଟର ସଉକି

ଘରେ ପଡ଼ି ପଡ଼ି ପଟା ଖଟଟିକୁ
ଲାଗିଲା ବହୁତ ଚିଟା
ଭାବିଲା ଯାଇକି ବଜାର ବୁଲିବ
କବାଟ ହୋଇଛି ଫିଟା ।

ଠକ ଠକ କରି ଚାଲିଗଲା ସିଏ
ଭିଡ଼ଥିବା ବଡ଼ ହାଟେ
ପୁରୁଣା ଖଟର ସଉକି ଦେଖିକି
ଆଡ଼ ହେଲେ ଲୋକେ ବାଟେ ।

ଦୋକାନ, ବଜାର ବୁଲି ଦେଖି ଦେଖି
ଆସିଗଲା କାହୁଁ ଗାଡ଼ି
ବିଚରା ଖଟର ଗୋଟିଏ ଗୋଡ଼କୁ
ଦେଇଥିଲା ସିଏ ମାଡ଼ି ।





ଛୋଟେଇ ଛୋଟେଇ ବଢ଼େଇ ଦୋକାନ
ଯାଇଥିଲା ଭଙ୍ଗା ଖଟ
ଭାବିଲା ପିଲାଙ୍କ ପରି ସିଏ ଆଉ
କରିବନି କେବେ ହଟ ।

ସେହିଦିନ ଠାରୁ ଭୟ ପାଇ ଖଟ
କୋଣରେ ପଡ଼ିଛି ଘରେ
ବାହାରକୁ ବୁଲି ଯିବାପାଇଁ ସିଏ
ମନେ ମନେ ଭାରି ଡ଼ରେ ।

# ପାଣି



କହୁଛି ପିଲାଏ ତୁମକୁ
ମୋର ନାଆଁଟି ପାଣି
ଲହଡ଼ି ଭାଙ୍ଗେ ମୁଁ ସାଗରେ
କେତେ ଦେଖାଇ ଠାଣି ।

ପାଣିରୁ ବାଷ୍ପ ହୁଏ ମୁଁ
ଯେବେ ଖରାଟି ପାଏ
ସାଗର ବୁକୁରୁ ଉଠିକି
ସିଧା ଆକାଶ ଯାଏ ।

ଧବଳ ବାଦଲ ହୋଇକି
ନୀଳ ଆକାଶେ ଭାସେ
କାଳିଆ ରଙ୍ଗରେ ବଦଳେ
ଯେବେ ଆଷାଢ଼ ଆସେ ।





ଶ୍ରାବଣ ମାସରେ ହୋଇକି
ବୁନ୍ଦା ଆକାଶୁ ଖସେ
ପରଶ ମୋହର ପାଇକି
ସାରା ଧରଣୀ ହସେ ।

ଗୋଳିଆ ପାଣି ମୁଁ ହୋଇକି
ମିଶେ ସମୁଦ୍ରେ ଯାଇ
ଖୁସିରେ ଗରଜି ଥାଏ ମୁଁ
ନିଜ ଘରକୁ ପାଇ ।

# ଚଡ଼୍‌ଚଡ଼୍ ରୁ ଗଡପଡ

ନିଆଁରେ ଲୁଣ ପକାଇଦେଲେ
ହୁଅଇ ଚଡଚଡ
ଆମରି ଜେଜେ ଆସିଲେ ପରା
ହୁଅନ୍ତି ଭଡ ଭଡ ।

ପବନ ପାଇଁ ଭାଙ୍ଗିଲା ଗଛ
ହୋଇକି ମଡମଡ
ବାପା ଆମର ରାଗିଲେ ଦାନ୍ତ
କରନ୍ତି କଡମଡ ।

ବିଜୁଳି ଯେବେ ଆକାଶେ ମାରେ
ଶୁଭଇ ଘଡ ଘଡ
ଫେରିଲେ ଅଜା କବାଟ ପାଶେ
କରନ୍ତି ଖଡ ଖଡ ।





ସହରୁ ଆସି କହନ୍ତି କଥା
କକେଇ ବଡ ବଡ
ପତଳା ପିଲା କୁନାର ଦେଖ
ଦେହଟି ନଡ ନଡ ।

ଦିନରେ ବାଣ ଫୁଟିଲେ ପାରା
ଉଡ଼ନ୍ତି ଫଡ ଫଡ
ଥଣ୍ଡା ପାଇଁ କି ମୁନିର ନାକ
ହେଉଛି ସଡ ସଡ ।

ପରୀକ୍ଷା ଯେବେ ଆସଇ ଛାତି
ହୁଅଇ ଧଡ ଧଡ
ପଟା ଖଟରେ ଶୋଇକି ଆଇ
ହେଉଛି ଗଡପଡ ।



# ଅଙ୍ଗୁର ଓ ବରକୋଳି




ଅଙ୍ଗୁର ଦିନଟେ କହିଲା ଗରବେ
ବରକୋଳି ପାଶେ ଯାଇ
କୋଳିଙ୍କ ଭିତରେ ରାଣୀ ମୁଁ ଅଟଇ
ତୁହି ପରା ମୋର ଧାଈ ।

ଦେହ ମୋର ଦେଖ୍ ଡଉଲ ଡାଉଲ
ରସରେ ରହିଛି ଭରି
ପିଲାମାନେ ମତେ ଖୁସିରେ ଖାଆନ୍ତି
ସରାଗରେ ହାତେ ଧରି ।

ମିଠା ରସେ ମୋର ଶରୀରଟି ଗଢ଼ା
ଖଟା ତୁହି ବରକୋଳି
ଗଛଟି ତୋର କଣ୍ଟାରେ ଭରିଛି
ପାରନ୍ତିନି ପିଲେ ତୋଳି ।

ଅଙ୍ଗୁର କଥାକୁ ଶୁଣି ବରକୋଳି
କହିଥିଲା ଟିକେ କାଶି
କାହିଁପାଇଁ ତୁହି ଗରବ କରୁଛୁ
ବିଦେଶରୁ ଗ୍ଧଲି ଆସି ।




ପିଲାମାନେ ପରା ଶରଧାରେ ମତେ
କଳରେ ରଖନ୍ତି ଜାକି
କହୁଛି ମୋ'ର ଗୁଣର ଗାରିମା
ଯେତେ ଅଛି ଆଉ ବାକି ।

ବରଷଟି ସାରା ଖାଇବା ପାଇଁ କି
ଆଗ୍ରହ କରନ୍ତି ଆଇ
ମୋ ଆଗ୍ରହ ପାଇଁ ପିଲା ଠାରୁ ବୁଢ଼ା
ସଭିଏଁ ହୁଅନ୍ତି ବାଇ ।

ଧନୀ ଲୋକମାନେ ପଇସା ଦେଇକି
କିଣିକି ଖାଆନ୍ତି ତତେ
ଧନୀ ଓ ଗରିବ ଉଭୟ ଖାଆନ୍ତି
ଛାଡ଼ି ନ ପାରିକି ମତେ ।

ଖାଦ୍ୟସାର 'ଗ' ଦେହେ ମୋ ଭରିଛି
ଜାଣିଛୁ ଅଙ୍ଗୁର ଭାଇ
ଖଟାମିଠା ହୋଇ ଅରୁଚି ପାଟିକୁ
ସୁଆଦିଆ ଲାଗି ଥାଇ ।

# ଆମ ଅଜା

ଅଜା ଆମ ଭାରି ଟାଣୁଆ
ନାଁଟି ତାଙ୍କର ପାଣୁଆ ।

ତମ୍ବାପରି ତାଙ୍କ ଶରୀର
ଗପ ସେ କୁହନ୍ତି ପରୀର ।

ବଙ୍କୁଲୀ ବାଡ଼ିକୁ ଧରିକି
ଯାଆନ୍ତି ସେ ବିଲ ବାଡ଼ିକି ।

କାଖରେ ଜାକନ୍ତି ବଟୁଆ
ପ୍ରିୟ ଶାଗ ତାଙ୍କ ବଥୁଆ ।



ରାତିରେ ହୁଅନ୍ତି ବାଉଳି
ଖାଆନ୍ତି ସେ ଭାତ ଚାଉଳି ।

କାନ୍ଥକୁ ଆଉଜି ବସିକି
କଥା ସେ ହୁଅନ୍ତି ହସିକି ।

ଗାଧୋଇ ଯାଆନ୍ତି ବୁଆକୁ
ଖାଆନ୍ତି ସେ ମୁଢ଼ି ମୁଆଁକୁ
ଧରିକି ମୋ'ର ହାତକୁ
ସାଥିରେ ନିଅନ୍ତି ଯାତକୁ ।

# ରଙ୍ଗ

ଟଗରାଟ, ଯୁଇ, ଟଗର, ମଲ୍ଲୀ
ସଭିଙ୍କ ରଙ୍ଗ ଧଳା
କାଉ କୋଇଲି, କଜଳପାତୀ
ଅଟନ୍ତି ଗାଢ଼ କଳା ।

ଅଳିତା ନାଲି, ସିନ୍ଦୁର ନାଲି
ନାଲି ପାଚିଲା ଲଙ୍କା
ନାଲି ରକତ ଦେଖଇ ଯେବେ
ଲାଗଇ ମତେ ଶଙ୍କା ।





ସୂରୁଜମୁଖୀ, ସେବତୀ, ଚମ୍ପା
ହଳଦୀ ତାର ରଙ୍ଗ
ଗୋଲାପି ପଦ୍ମ ଫୁଟଇ ସେଠି
ଯେଉଁଠି ଥାଏ ପଙ୍କ ।

ମାଟିଆ ଅଟେ ମାଟିର ରଙ୍ଗ
ମାଟିଆ ପୁଣି ଚିଲ
ମାଟିଆ ଆଳୁ ଆଣିବା ପାଇଁ
ଯାଆନ୍ତି ଅଜା ବିଲ ।

ସବୁଜ ଶାଗ, ସବୁଜ ଶୁଆ
ସବୁଜ ପୁଣି ଘାସ
ସବୁଜ ରଙ୍ଗ ହୁଅଇ ଧରା
ଆସିଲେ ବର୍ଷା ମାସ ।





ବାଇଗଣ ର ରଙ୍ଗଟି ଦେଖ
ଅଟଇ ବାଇଗଣୀ
ଜାମୁକୋଳି ଖାଇବା ପାଇଁ
ବିକଳ ହୁଏ ମଣି ।

ଆକାଶ ନୀଳ, ସାଗର ନୀଳ
ନୀଳ ଅପରାଜିତା
ନୀଳକଇଁ ତୋଳିବା ପାଇଁ
ଅଳି କରୁଛି ମିତା ।

କମଳା ରଙ୍ଗ ସିନ୍ଦୁର ବୋଳା
ହନୁମାନଙ୍କ ଦେହେ
କମଳା ଲେମ୍ବୁ ଖାଇବ ବୋଲି
କିଇତି ମୁନା କହେ ।
ଇନ୍ଦ୍ରଧନୁର ସାତଟି ରଙ୍ଗ
ଅଛି ତୁମକୁ ଜଣା ?
କହୁଛି ମୁହିଁ ରଙ୍ଗର ନାମ
ବା, ଘ, ନି, ଶ, ହ, ନା, ଲା ।

# ମୋ ମା

ମାଆ ମୋ ଅଟନ୍ତି ଡାକତରାଣୀ
ବଟିକା ଦିଅନ୍ତି ବେମାର ଜାଣି ।

କାମକୁ ଯାଆନ୍ତି ଚ଼ଳାଇ ଗାଡ଼ି
ରୋଗୀ ମାନଙ୍କର ଦେଖନ୍ତି ନାଡ଼ି ।

କାମ ସେ କରନ୍ତି ସକାଳୁ ଉଠି
ମାସ ମାସ ଧରି ନଥାଏ ଛୁଟି ।

ମୋବାଇଲ ଫୋନ ଧରିକି ହାତେ
ଅସୁବିଧା ଦୂର କରନ୍ତି ସାଥେ ।







କରିସାରି ସିଏ ବଗିଚ୍ଚ କାମ
ସଞ୍ଜରେ ଜପନ୍ତି ଠାକୁର ନାମ ।

ଡ଼ାକ୍ତରଖାନାରୁ ଫେରିକି ଆସି
ସବୁ ରାତି ମତେ ପଢ଼ାନ୍ତି ବସି ।

ସମୟ ଟିକେ ପାଆନ୍ତି ଯେବେ
ଗପ ଓ କବିତା ଲେଖନ୍ତି ସେବେ ।

ଆମକୁ ଖୁଆନ୍ତି ଯତନ କରି
ତାଙ୍କ ସାଙ୍ଗେ କିଏ ହୋଇବ ସରି ?

# ଆବାଜ



କୁନି କୁକର ମା'କୁ ଖୋଜି
କାନ୍ଦଇ କୁଁ କୁଁ
ରାତି ଅଧରେ ଉଠିକି ଅଜା
କାଶନ୍ତି ଖୁଁ ଖୁଁ ।

ସଡ଼କେ ଯେବେ ମଟର ଚ୍ଛଲେ
ଶୁଭଇ ଘୁଁ ଘୁଁ
ଗଛରେ ହନୁ ଡ଼େଇଁ ଡ଼େଇଁକା
ହୁଙ୍କାରେ ହୁଁ, ହୁଁ ।

ଅନ୍ଧାର ହେଲେ ଚୁଚୁନ୍ଦ୍ରା ବୁଲେ
କରିକି ଚୁଁ, ଚୁଁ
ପେଁକାଳିର ଶବଦ ଶୁଭେ
କାନକୁ ପୁଁ, ପୁଁ ।



କୋଇଲି କେତେ କୋମଳ କଣ୍ଠେ
ଗାଉଛି କୁ, କୁ
ଶଶିକୁ ଦେଖି ସାଗରେ ଢ଼େଉ
ଗରଜେ ଘୁ, ଘୁ ।

ଫଣାକୁ ଟେକି ନାଗଟି କରେ
ଶବଦ ସୁ, ସୁ
ବରଷା ରାଣୀ ବରଷା ମାସେ
ବରଷେ ଢୁ, ଢୁ ।

# ବରଷା ରାଣୀ

ବରଷା ଅଟଇ ଋତୁର ରାଣୀ
ବାଦଲ ରୁ ପାଣି ଆଣଇ ଟାଣି ।

ଧରଣୀ ପିନ୍ଧଇ ସବୁଜ ଶାଢ଼ୀ
ଧରନ୍ତି ସଭିଏଁ ଛତାକୁ କାଢ଼ି ।

କୂଅ, ପୋଖରୀରେ ଭରଇ ପାଣି
ବିଜୁଳି ମାରଇ ଦେଖାଇ ଠାଣି ।

କାମରେ ଲାଗେନି ବିଞ୍ଚଣା, ପଙ୍ଖା
ନଈରେ ଚାଲଇ ନହୁଲି ଡ଼ଙ୍ଗା ।

ଧାନ ହୁଏ ଏବେ ବିଲରେ ରୁଆ
ବରଷାରେ ଓଦା ହୁଅନ୍ତି କୁଆ ।







ଗାଡ଼ିଆରେ କେତେ ଫୁଟଇ କଇଁ
ବରଷାରେ ଗଛ ପଡ଼ନ୍ତି ନଇଁ ।

ସାଧବାଣୀ ପୋକ ଚାଲନ୍ତି ଘାସେ
ମହମହ ହୋଇ କେତକୀ ବାସେ ।

କଲରା, କାଙ୍କଡ଼ ମିଳଇ ହାଟେ
ନଈବଢ଼ି ଲୋକେ ଦେଖନ୍ତି ଘାଟେ ।

ଗରମ ରୁ ଏବେ ମିଳିବ ଛୁଟି
ପଖାଳ ନଖାଇ ଖାଇବା ରୁଟି ।

# ଲୁଣର ଗୁଣ

ନାଁ ଟି ମୋର ଲୁଣ
ବିନା ଲୁଣରେ ତୁଣ ଖାଇଲେ
ଜାଣିବ ମୋର ଗୁଣ ।

ଆଗ୍ନରେ ଦେଲେ ଲୁଣ
ଫିମ୍ପି ନ ମାରି ରହିବ ଭଲ
ନ ଥିବ ଟିକେ ଖୁଣ ।

ନଡ଼ିଆ ମୂଳେ ଲୁଣ
ପକାଇ ଦେଖ ନଡ଼ିଆ କେତେ
ଫଳିବ ପଣ ପଣ ।

ତଣ୍ଟିଟି ଯେବେ ବସେ
ଲୁଣ ପାଣିରେ କୁଳି କରିଲେ
ସ୍ୱରଟି ଖୋଲେ ସେବେ ।

ଲୁଣ ମୁଁ ଥାଏ ଦେହେ
ରକତେ ମିଶି ଝାଳରେ ମିଶି
ମିଶି ତୁମରି ଲୁହେ ।









କମିଲେ ଲୁଣ ମାପ
ବାନ୍ତି ଲାଗିବ, ମଥା ଘୁରିବ
କମିକି ରକ୍ତଚାପ ।

ଝାଡ଼ା ହୋଇଲେ ବେଶି
ଲୁଣ ପାଣିକୁ ଚଢ଼ାନ୍ତି ଦେହେ
ଡ଼ାକ୍ତର ଦଳ ମିଶି ।

ଖରାରେ ବୋହି ଝାଳ
ଲହୁରେ ଲୁଣ କମାଇ ଦେଇ
ଡ଼ାକଇ ଆଣେ କାଳ ।

ଦେହକୁ ଲୁଣ ହିତ
ଲୁଣପକା କାଞ୍ଜି, ତୋରାଣି ପି
ଝାଞ୍ଜି ଖରାକୁ ଜିତ ।

# ଚକ୍ ଚକ୍

ବରଷା ଆସିଲେ ବେଙ୍ଗ ଡ଼ିଏଁ
ଫକ ଫକ
ବଜାର ଯିବାକୁ ମାମି ସବୁବେଳେ
ହକ ହକ
ଲୋକଙ୍କୁ ଦେଖିଲେ ଭାଇ ହୁଏ
ବକ ବକ
ଭାଉଜ ଆମର ସତେ କେତେ ଗୋରା
ତକ ତକ
ଶୋଷିଲା ମଣିଷ ପାଣି ପିଏ
ଢ଼କ ଢ଼କ
କିଏ ସେ ଆସିକି କବାଟ ବାଡ଼ାଏ
ଠକ ଠକ ।





ପରୀକ୍ଷା ଆସିଲେ ଛାତି ହୁଏ
ଧକ ଧକ ।
ଗୁପ୍ ଚୁପ୍ ଖାଇ ବାନ୍ତି କଲା ସୋନୁ
ଭକ ଭକ ।
ବଥ ବାହାରିଲେ ହାତ ବିନ୍ଧେ
ଟକ ଟକ ।
ସବୁବେଳେ ଅଜା ପୋଷାକ ପିନ୍ଧନ୍ତି
ଚକ ଚକ ।
ଡ଼େକଚିରେ ପାଣି ଫୁଟୁଅଛି
ଟକ ମକ ।
ଟିକିଏ କଥାରେ ନାନୀ କାନ୍ଦେ ହୋଇ
ସକ ସକ ।

# ଟାଣୁଆ ଫଳ

ଫଳ ଭିତରେ ଅଟେ ମୁଁ ରଜା
ପୂଜା ପରବରେ ପଡ଼ଇ ଖୋଜା ।

ଶରୀର ମୋହର କେମିତି ଜାଣ ?
ଭିତରେ ନରମ ବାହାରେ ଟାଣ ।

ପେଟରେ ଭରିଛି ମଧୁର ପାଣି
ଦେହ ଖରାପରେ ପିଅନ୍ତି ଆଣି ।

ଚୋପା ରେ ମୋହର ହୁଅଇ ଶେଯ
ଶୋଇବ ଯିଏ ସେ କରିବ ହେଜ ।





ନିଆଁରେ ପୋଡ଼ିଲେ ଦେହଟି କେବେ
ରନ୍ଧା ତେଲ ମୋର ଲଗାନ୍ତି ସେବେ ।

ଛୋଟ ଥିଲା ବେଳେ ଗୋଟୋମା କହି
ପିଲାଏ ଗୋଟାନ୍ତି ମୂଳରେ ରହି ।

ବାହୁଙ୍ଗା କୁହନ୍ତି ଡ଼ାହିକୁ ମୋର
ଭାଙ୍ଗେ ମୁଁ ପବନ ବହିଲେ ଜୋର୍ ।

ନଡ଼ିଆ ଅଟଇ ମୋ'ରି ନାମ
ମୋ ବିନା ହୁଏନି ପୂଜାର କାମ ।

# ମୋ ନାମ କୁହ ?

ତୁମକୁ ଛୁଇଁ କି ରହିଛି මୁହିଁ
ତୁମେ ମତେ ଦେଖି ପାରଇ ନାହିଁ ।

ଧରାରେ ରହିଛି ତୁମରି ପାଇଁ
ମୋ ବିନା କାହାର ଜୀବନ କାଇଁ ?

ଦିନରାତି ତୁମ ଛାତିରେ ପଶି
ଦେହରୁ ବିଷକୁ ଦିଏ ନିକାଶି ।

ନିଆଁ ଜଳିଥାଏ ମୋହରି ପାଇଁ
ଫୁଲରୁ ମହକ ଆଣେ ମୁଁ ଯାଇ ।









ରାଗିଗଲେ ମୁହିଁ ହୁଅଇ ଚାଇଁ
ଭାଙ୍ଗିଦିଏ ଗଛ, ଛପର ଯାଇ ।

ନାକ ତଳେ ହାତ ରଖିଲେ ଯାଇ
ଚିହ୍ନିବ ମତେ ମୋ ପରଶ ପାଇ ।

ନାମ ମୋ କୁହ ତ ବୁଆଁ ଓ ବୁଇଁ
'ବାୟୁ' ଅଟେ ଜାଣି ପାରିଲ ନାହିଁ ?

# ଅଜାଙ୍କ ଭାବନା

ଗାଁରୁ ଆଣି ଆସିଲେ ଅଜା
ଛୋଟିଆ ଆମ୍ବଗଛ
କେଉଁଠି ତାକୁ ପୋତିବେ ବୋଲି
ବୁଲିଲେ ବାରି ସାରା ।

ବିଚାର କରି ହାତରେ ଧରି
ଫାଉଡ଼ାଟିକୁ ନେଲେ
ଦକ୍ଷିଣ ଦିଗେ ଗାତଟି କରି
ଗୋବର ଖତ ଦେଲେ ।

ଡ଼ିଡ଼ିଟି ଛିଞ୍ଚି ଗଛଟି ପୋତି
ଢ଼ାଳିଲେ ମୂଳେ ପାଣି
ନାତୁଣୀ ଆସି ହୋଇଲା ଠିଆ
ନାଆଁଟି ତାର ରାଣୀ





କହିଲା ଅଜା ରଖିଛ ଆଶା
ଖାଇବ ବୋଲି ଫଳ
ଫଳିବ ଯେବେ ତୋଳିବା ପାଇଁ
ନଥିବ ତୁମ ବଳ ।

କହିଲେ ଅଜା ତୋ ପୁଅ ସାଙ୍ଗେ
ଆମ୍ବ ଖାଇବୁ ଯେବେ
କାହିଁକି ଗଛ ପୋତୁଛି ବୋଲି
ମନେ କରିବୁ ସେବେ ।





# ଅଜା, ଆଈ



ଅଜା କାହାକୁ କହିଲେ ଗୋରୀ
ଆଈ କୁହନ୍ତି କାଳି
ଭଲ କାହାକୁ କହିଲେ ଅଜା
ଆଈ ଦିଅନ୍ତି ଗାଳି ।

ଆଇଁଷ ଗନ୍ଧ ବାଜିଲେ ନାକେ
ଅଜା ଯାଆନ୍ତି ରାଗି
ଆଈ କୁହନ୍ତି କିଇତି ମାଛ
ଆଣ ମୋ'ରି ଲାଗି ।

କୁହନ୍ତି ଅଜା ମନ୍ଦିର ଯିବା
ସଅଳ କାମ ସାର
ସିନେମା ଯିବି କୁହନ୍ତି ଆଈ
ଆଜି ଯେ ରବିବାର ।

ଅଜା କୁହନ୍ତି ଆଈଙ୍କୁ ପିନ୍ଧ
ହାଲୁକା ରଙ୍ଗ ଶାଢ଼ୀ
ରଙ୍ଗୀନ ଶାଢ଼ୀ ପିନ୍ଧନ୍ତି ଆଈ
ପେଡ଼ି ଭିତରୁ କାଢ଼ି ।





ଭାବିଲୁ ଆଈ ଅଜାଙ୍କୁ ଜମା
ପାଆନ୍ତି ନାହିଁ ସୁଖ
ଅସଲ କଥା ପଡ଼ିଲା ଜଣା
ଆସିଲା ଯେବେ ଦୁଃଖ ।

ଜରରେ ଯେବେ ପଡ଼ିଲେ ଅଜା
କାନ୍ଦି ଉଠଲେ ଆଈ
ଚମ୍ପା ଚଢ଼ାଇ ପୂଜା କଲେ ସେ
ଶିବ ମନ୍ଦିର ଯାଇ ।

ସବୁରି ଆଗେ ଲୁହ ନିଗାଡ଼ି
କହିଲେ ଯାଇ ଆଈ
ଭଲ ମଣିଷ ଅଜାଙ୍କ ପରି
ଜଗତେ ପରା ନାହିଁ ।

ଯେମିତି ଅଜା ହୋଇଲେ ଭଲ
ରାଗିଲେ ପୁଣି ଆଈ
ଆଈଙ୍କ ମନ ଭିତର କଥା
ଗଲୁଣି ଆମେ ଜାଣି ।

# ଅହିଂସା

ସପନେ ଦେଖିଲି ଗ୍ରହଳୀ ଗୋଟିଏ
ଖୋଲିଛି ମିରିଗ ବଣରେ
କହୁଛି ସଭିଙ୍କୁ ପାଠୁଆ କରିବି
ଆଜି ମୁଁ କରୁଛି ପଣରେ ।

ବାଘ, ଭାଲୁ, ସିଂହ ଧାଡ଼ିରେ ବସିଲେ
ଆଗେ ଚକମାଲି ପକେଇ
ମାଆ ସାଙ୍ଗେ ଧଳା ଚିଲଟି ଆସିଲା
କାନ୍ଦି କାଟି କେତେ ଧକେଇ ।

ଟାଣି ଟାଣି କରି କୁନି ବିଲେଇକୁ
ଆଣିଥିଲା ମା' ବିଲେଇ
ପାଠପଢ଼ି ତୁହି ଜ୍ଞାନ ଅରଜିବୁ
କହିଥିଲା ସିଏ ଚିଲେଇ ।



ନାକରେ ଚଷମା ଥୋଇକି ମିରିଗ
କହିଲା ଶୁଣ ମୋ ଛାତର
ଆଇଁଷ ଖାଇବା ପାଇଁକି କେବେ ବି
ହେବ ନାହିଁ ତୁମେ କାତର ।

ଦେହରେ ହେଉଛି ଯେତେ ରୋଗ ସବୁ
ଆଇଁଷ ତା'ର କାରଣ
ମାଛ, ମାଂସ, ଅଣ୍ଡା ଖାଇବା ପାଇଁ କି
କରୁଛି ତୁମକୁ ବାରଣ ।



ବାପୁ କହିଛନ୍ତି ହିଂସା କରିବନି
ମାରିବନି କେବେ କାହାକୁ
ଫଳ ଓ ପରିବା ଖାଇଲେ ଆସିବ
ବଳ ତୁମ ଚଉ ବାହାକୁ ।

ଅଧା ସପନରୁ ନିଦ୍ରୁ ଉଠାଇଲା
ସାଙ୍ଗ ମୋ ବରୁଣ ବାରିକ
କହିଲା ସଅଳ ସ୍କୁଲ ଯିବା ଆଜି
ଅକ୍ଟୋବର ଦୁଇ ତାରିଖ ।

ଗୀତା ତ୍ରିପାଠୀ ବୃତ୍ତିରେ ଡାକ୍ତର, କିନ୍ତୁ ରୁଚି ରଖନ୍ତି କ୍ଷୁଦ୍ରଗଳ୍ପ ଓ ଶିଶୁ କବିତା ରଚ଼ନାରେ । ତାଙ୍କ ଶିଶୁ କବିତା ଗୁଡ଼ିକର ଛନ୍ଦ ସରଳ ଓ ଭାଷା ସୁବୋଧ । ଉପଧା ମିଳନରେ ଲେଖିକାଙ୍କର ପାରଦର୍ଶିତା ସର୍ବୋପରି ପ୍ରଶଂସନୀୟ । କଳ୍ପନାପ୍ରବଣ ଶିଶୁମାନଙ୍କୁ ଆଖି ଆଗରେ ରଖି ଲେଖିକା ବିଷୟବସ୍ତୁର ଚୟନ ମଧ କରନ୍ତି ।

ଡ଼ାକ୍ତର ତ୍ରିପାଠୀ ବିଶିଷ୍ଟ ଭାଷାତତ୍ତ୍ୱବିତ୍ ସ୍ୱର୍ଗତ ଡ଼କ୍ଟର କୁଞ୍ଜବିହାରୀ ତ୍ରିପାଠୀଙ୍କର କନ୍ୟା ।

**ପ୍ରକାଶିତ ପୁସ୍ତକ :**

ଗଳ୍ପ ସଂକଳନ :

୧) ଅପରାହ୍ନର ଅବଧାନ

୨) ରୂପାନ୍ତରିତ ରୂପା

୩) ଆକାଶର ରଙ୍ଗ

ଶିଶୁ କବିତା ସଂକଳନ :

୧) ଅଜବ ସପନ

୨) ଅଜାଙ୍କ ନାଟ